# ସୋମନାଥ ବ୍ରତ

## ପୂଜା ଓ କଥା





ପ୍ରାପ୍ତିସ୍ଥାନ—

**ସନ୍ନ୍ୟାସୀ ପୁସ୍ତକାଳୟ**

**ଦେଣବେହର ସାହ, ବ୍ରହ୍ମପୁର**

ମୂଲ୍ୟ—ଟ °୵ ମୂଲ୍ୟ—ତନଅଣା

# ସୋମନାଥ ବ୍ରତ

## ପୂଜା

ପ୍ରଥମତଃ ସ୍ୱସ୍ତି ବାଚନମ୍ । ବରୁଣ ପୂଜାଂ କୁର୍ଯ୍ୟାତ୍ । ତତୋ ସଙ୍କଳ୍ପଃ—ଦେଶକାଳବାକ୍ୟାନନ୍ତରଂ, ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକ ଦେବ ଶର୍ମାହଂ ମମ ଧନଧାନ୍ୟ ପୁତ୍ରପୌତ୍ର ବୃଦ୍ଧି ପୂର୍ବକ ଶ୍ରୀ ଶିବଲୋକ ପ୍ରାପ୍ତ୍ୟେସ୍କନ୍ଦପୁରାଣୋକ୍ତ ଶ୍ରୀ ସୋମନାଥବ୍ରତ ପୂଜାତତ୍ କଥାଶ୍ରବଣ କର୍ମାହଂ କୁର୍ବ୍ବେ । ଅସ୍ତ୍ୱିତି । ତତଃଆଚାର୍ଯ୍ୟବରଣମ୍ ବ୍ରହ୍ମ ଆସନ ସୂତ୍ରାଦ ଅର୍ଘ୍ୟସଂସ୍କାରଂ କୁର୍ଯ୍ୟାତ୍ । ତେନୋ-ଦକେନ ପୂଜୋପକରଣ ଦ୍ରବ୍ୟମାତ୍ମାନଂ ଚ ପ୍ରୋକ୍ଷୟେତ୍ । ତତୋ ହସ୍ତେ ପୁଷ୍ପଂ ଗୃହୀତ୍ୱା ଧ୍ୟାୟେତ୍ ଓଁ-ଧ୍ୟାୟେ ମହେଶ୍ୱରଂ ଦେବଂ ଶ୍ୱେତବର୍ଣ୍ଣଂ ଚତୁର୍ଭୁଜଂ । ତ୍ରିଶୂଳଂ ଡମ୍ବରୁଂ ଚୈବ ଖଟ୍ୱାଙ୍ଗଂ ଚ କପାଳକଂ । କରୈର୍ଦ୍ଦଧାନଂ ବରଦଂ ନାଗଯଜ୍ଞୋପବୀତନଂ । ଭସ୍ମ-ଭୂଷିତସର୍ବାଙ୍ଗଂ ପଞ୍ଚବକ୍ତ୍ରଂ ତ୍ରିଲୋଚନଂ । କପର୍ଦ୍ଦିନଂ ପ୍ରସନ୍ନାସ୍ୟଂ ଶାନ୍ତମାନନ୍ଦପୂରିତଂ । ଗିରୀଶଂତଂବୃଷାରୂଢ଼ଂଶିବଂଚନ୍ଦ୍ରାର୍ଦ୍ଧଶେଖରଂ ତତ୍ପାର୍ଶ୍ୱେ ସ୍ୱର୍ଣ୍ଣବର୍ଣ୍ଣାଭଂ ଦ୍ୱିଭୁଜାଂବରଦାଂ ଶିବାଂ । କଙ୍କଣାଙ୍ଗଦ-ମଞ୍ଜୀରକଣ୍ଠହାରକୁଣ୍ଡଳାଂ । ସିଦ୍ଧୈର୍ଦ୍ଦେବଗଣୈଃସ୍ତୁତା କୁମାରୀଂ ପ୍ରସନ୍ନବଦନାଂ ଦୁର୍ଗାଂ ଶାନ୍ତାଂ ସର୍ବଲକ୍ଷଣ ଲକ୍ଷିତାଂ । ସିଂହାରୂଢ଼ାଂ ତ୍ରିନୟନାଂ ତ୍ରିଶୂଳାଭୟଧାରିଣୀଂ । ସର୍ବକାମପ୍ରଦାଂ ଭକ୍ତବତ୍ସଳାଂ ଚନ୍ଦ୍ରଶେଖରଂ । ଇତି ଧ୍ୟାତ୍ୱା ଦେବସ୍ୟ ଶିରସି ପୁଷ୍ପଂ ଦଦ୍ୟାତ୍ ସୌବର୍ଣ୍ଣଂରଜତଂବାସୋମନାଥପ୍ରତିମାଂ ପଞ୍ଚାମୃତେନ ସ୍ନାପୟେତ୍ ଦେବାନାମଚତୁର୍ଥ୍ୟନ୍ତ ପ୍ରଣବାଦ୍ୟ ନମୋଯୁତଂ । ମନ୍ତ୍ରମେତ ଦ୍ବ୍ୟବଚ୍ଛେଦ୍ୟଂ ସର୍ବତ୍ର ସର୍ବକର୍ମଣି । ଆପ୍ୟାୟସ୍ୱେତ୍ୟାଦ ବୈଦିକ

ମନ୍ତ୍ରାନୁଚ୍ଚାର୍ଯ୍ୟ ଓଁ ନମଃ ଶିବାୟ ସୋମନାଥାୟ ପଞ୍ଚାମୃତେନ ସ୍ନାପ-ୟାମି । ତତଃ ସୁଗନ୍ଧ ଜଳେନ ସ୍ନାପୟେତ୍ । ତତୋ ଭଦ୍ରାସନେ ପୂଜାମଣ୍ଡପେଦେବଂସ୍ଥାପୟିତ୍ୱା ଗନ୍ଧାଦି ନୈବେଦ୍ୟାନ୍ତଂ ପୂଜୟେତ୍ । ତତଃ ପୀଠପୂଜା । ମଣ୍ଡଳସ୍ୟ ପୂର୍ବେ ଦ୍ୱାଂ ନନ୍ଦିନେ୍ୟ ନମଃ ଓଁ ମହାକାଳାୟନମଃ, ଓଁ ଗଙ୍ଗାୟୈ ନମଃ, ଓଁ ଯମୁନାୟୈ ନମଃ । ଦକ୍ଷିଣେ, ଓଁ ବିନାୟକାୟ ନମଃ, ଓଁ ଗୋଦାବର୍ଯ୍ୟୈନମଃ,ତତଃ ପଶ୍ଚିମେ, ଓଁ ଭୃଙ୍ଗେ୍ୟନମଃ, ଓଁ ସ୍କନ୍ଦାୟ ନମଃ, ଓଁ ସରସ୍ୱତେ୍ୟ ନମଃ । ତଦୁତ୍ତରେ,ଓଁ ଗୃମ୍ଭୁଣ୍ଡାୟୈ ନମଃ, ଓଁଉମାୟୈ ନମଃ,ଓଁ ଗୋମତ୍ୟୈ ନମଃ,ଓଁ ଚଣ୍ଡିକେଶ୍ୱରାୟ ନମଃ । ମଧ୍ୟେ, ଓଁ ଆଧାରଶକ୍ତ୍ୟୈ ନମଃ, ଓଁ କୂର୍ମାୟ ନମଃ, ଓଁ ଅନନ୍ତାୟ ନମଃ, ଓଁ କ୍ଷିତିମଣ୍ଡଳାୟ ନମଃ, ଓଁ ସୁମେରବେ ନମଃ, ଓଁ ପଦ୍ମାୟ ନମଃ, ଓଁ ପତ୍ରେଭ୍ୟୋ ନମଃ, କେଶରେଭ୍ୟୋନମଃ । ମଣ୍ଡଳସ୍ୟ ପୂର୍ବାଦି ଚତୁର୍ଦ୍ଦିକ୍ଷୁଓଁ ଧର୍ମାୟ ନମଃ, ଓଁ ଅଣିମାୟ ନମଃ, ଓଁ ଜ୍ଞାନାୟ ନମଃ, ଓଁ ବୈରାଗ୍ୟାୟନମଃ, ଓଁଐଶ୍ୱର୍ଯ୍ୟାୟନମଃ ଓଁଆଗ୍ନେୟାଦି ଚତୁଷ୍କୋଣେଷୁ, ଓଁ ଅଧର୍ମାୟ ନମଃ, ଓଁ ଅଜ୍ଞାନାୟନମଃ,ଓଁଅବୈରାଗ୍ୟାୟ ନମଃ, ଓଁ ଅନୈଶ୍ୱର୍ଯ୍ୟାୟନମଃ । ପୂର୍ବାଦ୍ୟଷ୍ଟଦଳମୂଳେ, ଓଁ ବାମ-ନାୟ ନମଃ, ଓଁ ଜ୍ୟେଷ୍ଠାୟୈ ନମଃ, ଓଁ ରୁଦ୍ରାୟ ନମଃ ଓଁ କାଳାୟନମଃ,ଓଁ ବଳବିକରଣାୟ ନମଃ,ଓଁ ବଳପ୍ରମଥନାୟନମଃ ଓଁ ସର୍ବଭୂତ ଦମନୋନ୍ମନେ୍ୟ ନମଃ । ମଧ୍ୟେ, ସାଙ୍ଗୋପାଙ୍ଗାୟ ଶ୍ରୀ ସୋମନାଥାୟ ନମଃ । ଇତି । ତତଃ ପୂର୍ବବତ୍ ଶ୍ରୀ ସୋମନାଥଂ ଧ୍ୟାତ୍ୱା ପ୍ରତିମା ସର୍ବାଙ୍ଗଂ ବିଚିନ୍ତ୍ୟ ପ୍ରାଣ ପ୍ରତିଷ୍ଠାଂ କୁର୍ଯ୍ୟାତ୍ ।

ପ୍ରାଣପ୍ରତିଷ୍ଠା । ଯଥା—ମନ୍ତ୍ରସ୍ୟେତ୍ୟାଦିଋଷିଚ୍ଛନ୍ଦୋଦେବତା ବିନିଯୋଗଷଡ଼ଙ୍ଗନ୍ୟାସ ଧ୍ୟାନ୍ୟାଦି କୃତ୍ୱା ତ୍ର୍ୟମ୍ବକମନ୍ତ୍ରଂଜପେତ୍ । ତତଃ ଶିବଗାୟତ୍ରୀଂ ପଠେତ୍ । ଓଁ ମହେଶ୍ୱରାୟ ବିଦ୍ମହେ ମହାଦେବାୟ

ଧୀମହି ତନ୍ନୋଶିବଃ ପ୍ରଚୋଦୟାତ୍ । ଇତି ଶିବ ଗାୟତ୍ରୀଂ ପ୍ରତିମା ହୃଦୟଂ ସ୍ପୃଷ୍ଟ୍ୱା । ନିଜପେତ୍ । ତତଃ ପୁଷ୍ପାଞ୍ଜଳୀନ୍ୟଂଦଦ୍ୟାତ୍ ଓଁ ଫ ସତ୍ତ୍ୱାୟ ନମଃ । ଓଁ ର ଂ ରଜସେ ନମଃ । ଓଁ ତଂତମସେନମଃ ତତୋ ମୂଳମନ୍ତ୍ରସ୍ୟଋଷ୍ୟାଦକଂକୃତ୍ୱାଧ୍ୟାୟେତ୍ । ଧ୍ୟାୟେନ୍ନିତ୍ୟମିତି ଧ୍ୟାନଂ ଅଥାବାହନ ମନ୍ତ୍ରଃ । ହସ୍ତେ ପୁଷ୍ପଂ ଗୃହୀତ୍ୱା, ଓଁ ଆଗଚ୍ଛ ଦେବଦେବେଶ ମର୍ତ୍ତ୍ୟଲୋକ ହିତେଚ୍ଛୟା ପୂଜା ମୟା ୟଥାତବ୍ୟା ସନ୍ନିଧୌ ଭବ ଶଙ୍କର ଓଁ ନମଃ ଶିବାୟ, ଶ୍ରୀ ସୋମନାଥାୟ ନମଃ । ଶ୍ରୀ ସୋମନାଥମାବାହୟାମି । ଓଁ ସୋମନାଥ ଅତ୍ରାଗଚ୍ଛ । ଆବାହନାଦ ଦଶମୁଦ୍ରା, ଆବାହନାଦ ଷୋଡ଼ଷ ମୁଦ୍ରା ।

ତତଃ ଆସନ ଦାନଂ, ସିଂହାସନଂ ମହାଦେବ ପ୍ରୀତ୍ୟର୍ଥଂତେ କୃତଂ ମୟା । ବ୍ରହ୍ମଣା ନିର୍ମିତଂ ପୂର୍ବମାସନଂ ପ୍ରତିଗୃହ୍ୟତାଂ । ଶ୍ରୀ ସୋମନାଥାୟ ଆସନଂ ନମଃ, ପଦ୍ମମୁଦ୍ରାଂ ଦର୍ଶୟେତ୍, ତତଃ ପାଦ୍ୟାସନଦାନଂ, ମହାମନଂ କୃତ୍ୱ ପ୍ରାଜ୍ଞନିର୍ମିତଂ ଚନ୍ଦ୍ରସନ୍ନିଭଂ ସୌବର୍ଣ୍ଣଂ ବହୁଧୈରତ୍ନୈର୍ଭୂଷିତଂ ଦେବଦୁର୍ଲଭଂ ।

ଶ୍ରୀ ସୋମନାଥାୟ ପାଦ୍ୟାସନ ନମଃ । ଶ୍ରୀ ସୋମନାଥାୟ ପାଦ୍ୟଂ ନମଃ । ଅର୍ଘ୍ୟଂଗୃହୀତ୍ୱାଓଁ ଗଙ୍ଗୋଦକେନସଂଯୁକ୍ତଂଚନ୍ଦନେନ ପରିଷ୍କୃତଂ । ଅର୍ଘ୍ୟଂ ଗୃହାଣ ଦେବେଶ ଭକ୍ତ୍ୟଂ ମେଽପ୍ୟଚଳାଂ କୁରୁ । ଶ୍ରୀ ସୋମନାଥାୟ ଅର୍ଘ୍ୟଂ ସ୍ୱାହା ତତଃଆଚମନଂ ଆଚମନମନ୍ତ୍ରଃ । ଗଙ୍ଗାଦ ସଲିଳଧାରଂ ଗୃହାଣାଚମନୀୟକଂ । ଆଚମ୍ୟ ଚଶୁଚିର୍ଭୂତ୍ୱା ପ୍ରସାଦଂ କୁରୁମେ ବିଭୋ । ଶ୍ରୀ ସୋମନାଥାୟ ଆଚମନୀୟଂ ସ୍ୱଧା । ଓଁ ନମଃଶିବାୟ ଶ୍ରୀ ସୋମନାଥାୟ ମଧୁପର୍କଂ ନମଃ ପୁନରାଚମନଂ । ଗଙ୍ଗାଦ ସଲିଲାଧାରଂ ଗୃହାଣାଚମନୀୟକଂ ଆଚମ୍ୟ ଚ ଶୁଚିର୍ଭୂତ୍ୱା ପ୍ରସାଦଂ କୁରୁମେ ବିଭୋ । ଶ୍ରୀ ସୋମନାଥାୟ ଆଚମନୀୟଂ ସ୍ୱଧା । ସ୍ନାନମନ୍ତ୍ର—ସ୍ନପୟାମି ଜଳୈଃଶୁଦ୍ଧୈଃଗନ୍ଧପୁଷ୍ପ ସମନ୍ୱିତୈଃ । ସ୍ନାହି ମାଂ ତ୍ୱଂ ବିରୂପାକ୍ଷଦେବ ନାମପିଶାଶ୍ୱତ । ଓଁ ନମଃଶିବାୟ ଶ୍ରୀ

ସୋମନାଥାୟ ସ୍ନାନାୟଂ ବୌଷଟ୍ । ବସ୍ତ୍ରମନ୍ତ୍ରଃ । ବସ୍ତ୍ରଂସୁଶୋଭନଂ ଦବ୍ୟଂ ସର୍ବେଷାମପିଭୂଷଣଂ । ଗୃହାଣତ୍ୱମୁମାନାଥ ଦେବା ନାମପି ଶାଶ୍ୱତମ୍ ।ଓଁ ନମଃଶିବାୟଶ୍ରୀସୋମନାଥାୟବସ୍ତ୍ରଂନମଃ ।ଯଜ୍ଞୋପବୀତ ମନ୍ତ୍ରଃ।ପବିତ୍ରାଣାଂପବିତ୍ରଂଭୃଗୁବେଦର୍ମଂସ୍ରଜଂଦୟୋଗୃହ୍ୟତାମୁପବୀତଂ ମେ ଧନ୍ୟମାରୋଗ୍ୟମୁତ୍ତମ ॥ ଶ୍ରୀସୋମନାଥାୟ ଯଜ୍ଞୋପବୀତଂନମଃ ଚନ୍ଦନ ମନ୍ତ୍ରଃ । ଚନ୍ଦନଂ ଚ ସକର୍ପୂରଂ କୃତଂ ଗୃପପ୍ରସାଂଗନ୍ଧୈଃ । ଭକ୍ତ୍ୟାଦତ୍ତଂମୟାଦେବ ଗୃହାଣତ୍ୱଂ ମହେଶ୍ୱର ।ଓଁ ନମଃ ଶିବାୟ ଶ୍ରୀ ସୋମନାଥାୟ ଗନ୍ଧୋନମଃ ।ପୁଷ୍ପମନ୍ତ୍ରଃ। ନାନାବଧାନିପୁଷ୍ପାଣି ସ୍ୱଚ୍ଛାନ ମୟା ଶଭୋ । ପୂଜାର୍ଥଂ ତେ ଶଧେସ୍ୱାନ ଗୃହ୍ୟତାଂ ପରମେଶ୍ୱର ।ଓଁ ଶ୍ରୀସୋମନାଥାୟ ପୁଷ୍ପଂବୌଷଟ୍ଓଁ ନମଃଶିବାୟ ଶ୍ରୀ ସୋମନାଥାୟମାଲ୍ୟଂ ନମଃ । କୁଷ୍ମାଣ୍ଡପୁଷ୍ପଦାନ ମନ୍ତ୍ରଃ । କୁଷ୍ମାଣ୍ଡ ଦଶପୁଷ୍ପାଣିସମାନକୁତବର୍ଣିତ । ଗୃହାଣତ୍ୱଂ ମହାଦେବ ପ୍ରସନ୍ନୋଭବ ମେ ସଦା । ଓଁ ନମଃ ଶିବାୟ ଶ୍ରୀ ସୋମନାଥାୟ କୁଷ୍ମାଣ୍ଡ ଦଶପୁଷ୍ପାଣି ସମର୍ପୟାମି । ଦଶଦୁର୍ବା ମନ୍ତ୍ରଃ । ଦୁର୍ବା ପ୍ରଶସ୍ତା ବହୁଳାସଭୂତାଃ କ୍ଷିତିମଣ୍ଡଳେ । ଯଥା ଲଭମି ସନ୍ତାନଂ ତଥା ତ୍ୱଂ କୁରୁ ଶଙ୍କର । ଓଁ ଶ୍ରୀସୋମନାଥାୟଦଶଦୁର୍ବାଂସମର୍ପୟାମି ।ଧୂପମନ୍ତ୍ରଃ । ଧୂପସ୍ତ୍ୱଦର୍ଥଂ ସଯୁକ୍ତୋ ଗୁଗ୍‌ଲାଦ୍ୟୈଃ ସୁଶୋଭନଃ । ପ୍ରୀତିଂ କୁରୁଷ୍ୱ ଦେବେଶ ଜଗତାଂ ହିତକାରକଃ । ଓଁ ନମଃ ଶିବାୟ ଶ୍ରୀସୋମନାଥାୟ ଧୂପଂ ସ୍ୱାହା ।ଓଁ ନମଃଶିବାୟଶ୍ରୀସୋମନାଥାୟଆଚମନୀୟଂସ୍ୱଧା ଦୀପମନ୍ତ୍ରଃ ଦୀପଃ ସ୍ୱୟଂମହାଦେବ ତମୋନାଶକ ଏବ ଚ । ଗୃହ୍ୟତାଂପାର୍ବତୀ-ନାଥ ଦେବ ଦେବ ନମୋଽସ୍ତୁତେ । ଶ୍ରୀ ସୋମନାଥାୟ ଦୀପଂ ସ୍ୱାହା ଆଚମନୀୟଂନୈବେଦ୍ୟଂସଂସ୍କୃତ୍ୟଚଲୁକଂଗୃହୀତ୍ୱାକୁର୍ଯ୍ୟାତ୍ନୈବେଦ୍ୟଂ ଗୃହ୍ୟତାଂଦେବ ସୁପକ୍ୱଂ ଚ ସୁସଂସ୍କୃତଃ । ନାନାଦ୍ରବ୍ୟ ସମାୟୁକ୍ତ ମୟା ଭକ୍ତ୍ୟା ନିବେଦିତଂ । ଓଁ ନମଃ ଶିବାୟ ଶ୍ରୀ ସୋମନାଥାୟ

ନୈବେଦ୍ୟଂ ସ୍ୱାହା । ପ୍ରାଣାଦିପଞ୍ଚମୁଦ୍ରାଂପ୍ରଦର୍ଶୟେତ୍ ଅଥ ଆଚମନମନ୍ତ୍ରଃ । ଗଙ୍ଗାଦି ସଲିଳଧାରଂ ଗୃହାଣାଚମନୀୟକଂ । ଆଚମ୍ୟ ଚ ଶୁଚିର୍ଭୂତ୍ୱା ପ୍ରସାଦଂକୁରୁମେ ଭବେ । ଓଁ ଶ୍ରୀସୋମନାଥାୟ ଆଚମନୀୟଂ ସ୍ୱଧା । ତାମ୍ବୂଳ ମନ୍ତ୍ରଃ । କର୍ପୂରସଂଯୁକ୍ତଂ ତାମ୍ବୂଲଂ ମୁଖଶୁଦ୍ଧିକରଂ ପରଂ । ଗୃହାଣ ତ୍ୱଂ ସୁରଶ୍ରେଷ୍ଠ ଭକ୍ତିମୁକ୍ତିଫଳପ୍ରଦ । ତାମ୍ବୂଲଂ ନମଃ । ଚଣ୍ଡେଶ୍ୱରାୟ ଚଣ୍ଡନୈବେଦ୍ୟଂ ସ୍ୱାହା ଆଚମନୀୟଂ ସ୍ୱଧା । ଅଥ ଦଶପୂଜା । ମଣ୍ଡଳସ୍ୟ ଚତୁର୍ଦ୍ଦିକ୍ଷୁ ଓଁ ହ୍ରେଂ ତତ୍ପୁରୁଷାୟ ନମଃ । ଓଁ ହ୍ରାଂ ଅଘୋରାୟ ନମଃ । ଓଁ ସଂ ସଦ୍ୟୋଜାତାୟ ନମଃ । ଓଁ ବାଂ ବାମଦେବାୟ ନମଃ । ମଧ୍ୟେ ହିଂ ଈଶାନାୟ ନମଃ । ପୂର୍ବାଦ୍ୟଷ୍ଟମୂଳେ । ଓଁ ସର୍ବାୟ କ୍ଷିତି ମୂର୍ତ୍ତୟେ ନମଃ । ଓଁ ଭବାୟ ଜଳମୂର୍ତ୍ତୟେ ନମଃ । ଓଁ ରୁଦ୍ରାୟ ଅଗ୍ନି ମୂର୍ତ୍ତୟେ ନମଃ । ଓଁ ଉଗ୍ରାୟ ବାୟୁ ମୂର୍ତ୍ତୟେ ନମଃ । ଓଁ ଭୀମାୟ ଆକାଶ ମୂର୍ତ୍ତୟେ ନମଃ । ଓଁ ପଶୁପତୟେ ଯଜମାନମୂର୍ତ୍ତୟେ ନମଃ । ଓଁ ମହା-ଦେବାୟ ସୋମମୂର୍ତ୍ତୟେ ନମଃ । ଓଁ ଈଶାନାୟ ସୂର୍ଯ୍ୟମୂର୍ତ୍ତୟେ ନମଃ । କର୍ଣ୍ଣିକାୟ ଓଁ ବ୍ରହ୍ମଣେ ନମଃ । ଓଁ ମାହେଶ୍ୱର୍ଯ୍ୟୈ ନମଃ । ଓଁ କୌମାର୍ଯ୍ୟୈ ନମଃ । ଓଁ ବୈଷ୍ଣବ୍ୟୈ ନମଃ । ଓଁ ବାରାହ୍ୟୈ ନମଃ ଓଁ ନାରସିଂହ୍ୟୈ ନମଃ । ଓଁ ଇନ୍ଦ୍ରାଣ୍ୟୈ ନମଃ । ଓଁ ଚାମୁଣ୍ଡାୟୈ ନମଃ । ଓଁ ମହାଲକ୍ଷ୍ମ୍ୟୈ ନମଃ । ଓଁ ତ୍ରିଶୂଳାୟ ନମଃ । ଓଁ ପିନାକାୟ ନମଃ । ଓଁ ଡମ୍ବରବେ ନମଃ । ଓଁ ଖଟ୍ୱାଙ୍ଗାୟ ନମଃ । ଓଁ ଚକ୍ରାୟ ନମଃ । ଓଁ ଖଡ୍ଗାୟ ନମଃ । ଓଁ ଖେଟକାୟ ନମଃ । ଦଳବାହ୍ୟେ ଦଶଦିକ୍ଷୁ ଓଁ ଇନ୍ଦ୍ରାୟ ନମଃ । ଓଁ ଅଗ୍ନୟେ ନମଃ । ଓଁ ଯମାୟ ନମଃ । ଓଁ ନୈଋତାୟ ନମଃ । ଓଁ ବରୁଣାୟ ନମଃ । ଓଁ ବାୟବେ ନମଃ । ଓଁ କୁବେରାୟ ନମଃ । ଓଁ ଈଶାନାୟ ନମଃ । ଓଁ ବ୍ରହ୍ମଣେ ନମଃ । ଓଁ ଅନନ୍ତାୟ ନମଃ । ମଧ୍ୟେ ଶ୍ରୀସୋମନାଥାୟ ନମଃ । ତତୋ ବର୍ଦ୍ଧନୀ କଳଶେ ଓଁ ଆଦିତ୍ୟାଦି ନବ-

ଗ୍ରହେଭ୍ୟୋ ନମଃ । ଓଁ ଏକାଦଶ ରୁଦ୍ରେଭ୍ୟୋ ନମଃ । ଓଁ ଧ୍ରୁବାଦ୍ୟଷ୍ଟବସୁଭ୍ୟୋ ନମଃ । ଓଁ ସପ୍ତମରୁଦ୍‌ଗଣେଭ୍ୟୋ ନମଃ । ଓଁ ବ୍ରହ୍ମଣେ ନମଃ । ଓଁ ଅଗ୍ନୟେ ନମଃ । ଓଁ ପୃଥିବ୍ୟୈନମଃ । ଓଁ ବାଚସ୍ପତୟେ ନମଃ । ଓଁ ସର୍ବେଭ୍ୟୋ ଦେବେଭ୍ୟୋ ନମଃ । ଏତାନ୍ ପଞ୍ଚୋପଚାରୈଃ ପୂଜୟେତ୍ । ତତୋ ଦଶଫଳ ଦାନମନ୍ତ୍ରଃ ହୃଦ୍ୟାନି ଦଶସଙ୍ଖ୍ୟାନି ଫଳାନି ବିବିଧାନିଚ ଗୃହାଣତ୍ୱଂ ସଦାଶମ୍ଭୋ ଭକ୍ତ୍ୟା ନୈବେଦ୍ୟକଳାଂ କୁରୁ । ଓଁ ନମଃ ଶିବାୟ ଶ୍ରୀ ସୋମନାଥାୟ ଦଶଫଳାନି ସମର୍ପୟାମି, ଦ୍ୱାପନ ଶଶାଙ୍କାୟ କପର୍ଦ୍ଦେନ୍ଦୁ କଳାଧର ତ୍ରାହି ମାଂ ତ୍ୱଂ ବହୁପାପ ସଂସାରେହତ୍ର ସାଗରତ୍ । ଇତିପ୍ରାର୍ଥନା । ତତୋ ନୂତନ ଡୋରକ ଦାନ ମନ୍ତ୍ରଃ । କରସ୍ଥଂ ଡୋରକଂ ଶମ୍ଭୋ । ଦେବପାଦେ ସମର୍ପିତଂ । ଶମ୍ଭୋନାଥଗୃହାଣତ୍ୱଂ ଜନ୍ମପ୍ରା ଭୂଷଣକୃତଂ ଓଁ ନମଃ ଶିବାୟ ଶ୍ରୀ ସୋମନାଥାୟ ନୂତନଂ ଡୋରକଂ ସମର୍ପୟାମି । ପୁରାତନ ଡୋରକଂ ଦେବ ସମୀପେସ୍ଥାପୟେତ୍ । ବ୍ରତବନ୍ଧନମନ୍ତ୍ରଃ ବ୍ରତସୂତ୍ର ମିଦଂ ଦେବ ସୋମାଖ୍ୟଂ ସର୍ବସିଦ୍ଧିଦଂ ବଧ୍ନାମି ବାହୁମୂଳେ ମେ ସୋମନାଥ ନମୋଽସ୍ତୁତେ । ଇତି ଡୋରକ ବନ୍ଧନଂ । ତତ୍ କଣ୍ଠତ୍ର ଭକ୍ତ୍ୟାଶ୍ୱରେଣ ତବଦେବ କୃତମସ୍ତୁ । ତତ୍ସର୍ବଂ ପାର୍ବତୀନାଥ ପୂର୍ଣ୍ଣଂ ଭବତୁ ତୁଷ୍ଟସ୍ତ୍ୱଂ । ଇତି ପ୍ରାର୍ଥୟେତ୍ । ଆରତ୍ରିକଂ ଦଦ୍ୟାତ୍ । ନମୋଽସ୍ତୁତେଽସ୍ତି ସକଳେନ୍ଦୁ ଧାରଣେ, ଫଣୀନ୍ଦ୍ର ରତ୍ନଂ ଦ୍ୟୁତି-କଣ୍ଠଗର୍ବିତେ । ହରସ୍ୱ ଶୁଭ୍ରାଭ୍ର କପାଳମାଳନେତ୍ରାନ୍ତ ଦୈତ୍ୟ-ପୁରତୋଗ୍ର ଶୂଳିନେ । ଇତି ପ୍ରାର୍ଥୟିତ୍ୱା ଦଣ୍ଡପ୍ରଣାମଃ । ଇତି ।

ସୋମନାଥ ବ୍ରତ ପୂଜାବିଧିଃ ସମାପ୍ତ ।

# ସୋମନାଥ ବ୍ରତ କଥା

ଏକ ଦିନକରେ କୈଳାଶ ଶିଖରେ ଈଶ୍ୱର ପାର୍ବତୀଙ୍କ ସଙ୍ଗରେ ଯେଉଁ ଆନନ୍ଦରେ ବିହାର କରୁଛନ୍ତି, ସେଠାରେ ତେତିଶି କୋଟି ଦେବତା ବସିଅଛନ୍ତି, ଏମନ୍ତ ସମୟରେ ପାର୍ବତୀ ପଚାରିଲେ, ହେ ସ୍ୱାମୀ ! କେଉଁବ୍ରତ କଲେ ତୁମ୍ଭ ମନରେ ସନ୍ତୋଷ ହୁଅଇ ମତେ କହିବା ହୁଅନ୍ତୁ । ମୁଁ ସେ ବ୍ରତ କରିବି। ଏହାଶୁଣି ଈଶ୍ୱର ହସି କହିଲେ, ହେ ଦେବୀ ପାର୍ବତୀ, କହୁଅଛି ଶୁଣ । ଆମ୍ଭର ସୋମନାଥ ବ୍ରତ ବୋଲି ଗୋଟିଏ ପ୍ରଧାନବ୍ରତ ଅଛି । ତୁମ୍ଭେ ସେ ବ୍ରତ କର । ପାର୍ବତୀ ପଚାରିଲେ ସେ ବ୍ରତ କଲେ କି ଫଳହୁଅଇ । ହେ ପ୍ରିୟେ, କହୁଅଛୁ ଶୁଣ । ପୂର୍ବକାଳରେ ମାଳବ ଦେଶରେ ବୀରବିକ୍ରମ ମାଣ୍ଡଳ ବୋଲି ଗୋଟିଏ ରଜାଥାନ୍ତି । ସେହି ରାଜ୍ୟକୁ ଆମ୍ଭର ଷାଠିଏ ଜଣ କୋପଣ୍ଡି ଗଲେ । ସେହି ରାଜ୍ୟର ଲୋକ-ମାନେ ସୋମନାଥ ବ୍ରତ କରୁଅଛନ୍ତି । କୋପଣ୍ଡିମାନେ ସେ ନଗର ଦେଖି ବଡ଼ ସନ୍ତୋଷ ହେଲେ । କୋପଣ୍ଡିମାନେ ରାଜ ସିଂହଦ୍ୱାରେ ପ୍ରବେଶ ହେଲେ । ଦ୍ୱାରପାଳକୁ କହିଲେ ଆମ୍ଭେଯାଇ ରାଜାଙ୍କୁ ଭେଟିବୁ । ଦ୍ୱାରପାଳ ଯାଇ ରାଜାଙ୍କୁ କହିଲା, ଶ୍ରୀ ସୋମନାଥଙ୍କର ଷାଠିଏ ଜଣ କୋପଣ୍ଡି ଆସିଅଛନ୍ତି, ତୁମ୍ଭଙ୍କୁ ସୋମନାଥଙ୍କ ପ୍ରସାଦ ଦେବେ । ଦ୍ୱାରପାଳ ବଚନ ଶୁଣି ରାଜା ବଡ଼ ସନ୍ତୋଷ ହେଲେ । ରାଜା କହିଲେ, ତାଙ୍କୁ ଘେନିଆସ । ଦ୍ୱାରପାଳ ଯାଇ କହିଲା, ହେ କୋପଣ୍ଡିମାନେ, ତୁମ୍ଭେ ଭିତରକୁ ଆସ । ଏ ବଚନ ଶୁଣି କୋପଣ୍ଡିମାନେ ରାଜାଙ୍କ ସମ୍ମୁଖକୁ ଗଲେ । ରାଜା କୋପଣ୍ଡିମାନଙ୍କୁ ଅର୍ଘ୍ୟ ଦେଇ ପୂଜା କଲେ । କୋପଣ୍ଡିମାନେ ସନ୍ତୋଷ ହୋଇ ଶ୍ରୀ ସୋମନାଥଙ୍କ ବିଭୂତି ପ୍ରସାଦ ଦେଲେ । ରାଜା କୋପଣ୍ଡିମାନଙ୍କୁ ପଚାରିଲେ, ହେ କୋପଣ୍ଡିମାନେ, କାହିଁକି ଏଠାକୁ ଆସିବା ହେଲେ, ଏହାକହିବା ହେଉ । କୋପଣ୍ଡିମାନେ କହିଲେ, ଆମ୍ଭେ ପଶ୍ଚିମ ସୋମନାଥଙ୍କ

କୋପତି, ତୁମ୍ଭର କୀର୍ତ୍ତି ଶୁଣି ଏଠାକୁ ଆଇଲୁ । ଏହା ଶୁଣି ରାଜା ବଡ଼ ସନ୍ତୋଷ ହେଲେ । ହେ କୋପତିମାନେ, ଆଜ ମୋହର ଭାଗ୍ୟ, ଆଜ ମୋହର ପୁରରେ ରହି ଭୋଜନ କରିବ । ଏଉତ୍ତାରୁ ରାଜା ରନ୍ଧଣିଆମାନଙ୍କୁ ଡ଼କାଇ କହିଲେ, ହେ ସୁପକାରମାନେ ସୋମନାଥଙ୍କଠାରୁ ଷାଠିଏ ଜଣ କୋପତି ଆସିଅଛନ୍ତି, ସେମାନେ ଭୋଜନ କରିବେ । ଏହା ଶୁଣି ସୁପକାରମାନେ ଯାଇ ଷଡ଼ରସ ପାକ ନିର୍ମାକଲେ । ରାଜାଙ୍କୁ ଯାଇ ଜଣାଇଲେ, ଭୋ ଦେବ, ପାକ ନିର୍ମାହେଲା । ରାଜା କୋପତିମାନଙ୍କୁ କହିଲେ, ବେଗେସ୍ନାନ କରି ଆସ, ବହୁତ ଉଛର ହେଲାଣି । ଏହାଶୁଣି କୋପତିମାନେ ସ୍ନାନକରି ନିତ୍ୟକର୍ମ ସାରି ଭୋଜନ ମନ୍ଦିରରେ ପ୍ରବେଶ ହେଲେ । ରାଜା କୋପତିମାନଙ୍କୁ ଆସନ ଦେଇ ବସାଇଲେ, ରାଜା ବସିଲେ, ପତ୍ର ପକାଇଲେ, ସୁବର୍ଣ୍ଣ ଝରିରେ ଜଳଦେଲେ । ଅନ୍ନ ପରଷିଲେ, ନାନାନ୍ଦ ବ୍ୟଞ୍ଜନ ଦେଲେ, ଘୃତ ଦେଲେ, ଖିରିପିଠା ଦେଲେ, ଲଡ଼ୁଛେନା ଦେଲେ । କୋପତିମାନେ ଭୋଜନ କଲେ । କୋପତିମାନେ କହିଲେ, ଆମ୍ଭେ ସନ୍ତୋଷ ହେଲୁ , ହେ ରାଜା ତୁମ୍ଭେ କ ବରମାଗୁଅଛ ମାଗ । ରାଜା କହିଲେ ମୁଁ କବରମାଗିବି, ତୁମ୍ଭେ ଯାଚକରି ଦିଅ । କୋପତିମାନେ ବୋଇଲେ, ଆମ୍ଭର ସୋମନାଥ ବ୍ରତ କର, ପୁତ୍ର ପୁତ୍ରୀ ଅନେକ ସମ୍ପଦପାଇବ । ରାଜା ହରଷ ହୋଇ ବୋଇଲେ, ହେ କୋପତିମାନେ, ସେ ବ୍ରତର ବିଧାନ ଆମ୍ଭଙ୍କୁ କହିବା ହେଉ । କୋପତିମାନେ ବୋଇଲେ, ହେ ରାଜା ଶୁଣ ଆଶ୍ୱିନମାସ ଶୁକ୍ଳଦଶମୀ ଦିନ ଏ ବ୍ରତ କରିବ । ପ୍ରାତଃକାଳୁ ସ୍ନାନ କରିବ, ଦଶମେଞ୍ଚ ହଳଦି କରିବ, ଦଶମେଞ୍ଚ ଗନ୍ଧକରିବ । ଦଶଖଣ୍ଡ ଦାନ୍ତକାଠି କରିବ, ଦଶଥର ଦାନ୍ତଘଷିବ, ଗନ୍ଧ ହଳଦି ଲଗାଇ ଦଶଥର ସ୍ନାନ କରିବ, ଶୁକ୍ଳ ବସ୍ତ୍ର ପିନ୍ଧିବ, ଦଶବର୍ଣ୍ଣର ଫୁଲ କରିବ । ଦଶବର୍ଣ୍ଣର ଫଳ କରିବ ।

ଦଶଟେ ଗୋଟି ଶୁକ୍ଳ ଜଆଗୁଡ଼ଲ କରିବ । ଦଶଖିଅ ସୂତା କରିବ, ବ୍ରତରେ ଦଶଗଣ୍ଠି ପକାଇବ । ସ୍ଫଟିକ ଲିଙ୍ଗ କରିବ, ନହେଲେ ମୃତ୍ତିକାରେ ଲିଙ୍ଗ କରିବ । ରୁଦ୍ରମଣ୍ଡଳ କାଟିବ ! ଲିଙ୍ଗ ସ୍ଥାପନ କରିବ । ଦଶଗୋଟି କଖାରୁଫୁଲରେ ପୂଜାକରିବ । ଦଶବର୍ଣ୍ଣର ପୁର ଦେଇ ଦଶ ଗୋଟି ପିଠା କରିବ । ପୂଜା କରିବ । ବ୍ରାହ୍ମଣଠାରୁ କଥା ଶୁଣିବ । କଥା ଶୁଣିସାରି ଦୁର୍ବାକ୍ଷତ ଚଢ଼ାଇବ, ଚନ୍ଦ୍ରଙ୍କୁ ଅର୍ଘ୍ୟଦେବ । ଏହି ବିଧିଅନୁସାରେ ବ୍ରତକଲେ ମନୋବାଞ୍ଛିତ ଫଳ ପାଇବ । ରାଜା ଏବଚନଶୁଣି କହିଲେ, ହେ କପୋତିମାନେ, ଏ ବ୍ରତ ମୋ ମନକୁ ନପାଇଲା । ନିର୍ଲ୍ଲୋକରରାଜା ଭଲ ବ୍ରତ କଲା ବୋଲି ଉପହାସ କରିବେ । ରାଜାଙ୍କ ବଚନ ଶୁଣି କପୋତିମାନେ କହିଲେ, ହେ ରାଜା, ଏକଥା ଶୁଣି ଆମ୍ଭମନରେ କୋପ ହେଲା । ସୋମନାଥ ବ୍ରତ ନିନ୍ଦାକଲୁ, ଏଣୁକରି ତୋ ଅଙ୍ଗରେ କୁଷ୍ଠବ୍ୟାଧି ହେଉ । କପୋତିମାନେ ଏପରି ଶାପଦେଇ ବାହାରିଗଲେ । ସେହିକ୍ଷଣି ରାଜା ଦେହରେ କୁଷ୍ଠବ୍ୟାଧି ହେଲା । କର ଚରଣ ଖଣ୍ଡିଆ ଖଣ୍ଡିଆ ହେଲା । ରାଜା ଏପରି ଆଶ୍ଚର୍ଯ୍ୟକଥା ଦେଖି ଭାରିଯାକୁ କହିଲେ । ପୂର୍ବ ବୃତ୍ତାନ୍ତ ସବୁ କହିବାରୁ ରାଣୀ କହିଲେ, ତୁମ୍ଭେ ଶ୍ରୀ ସୋମନାଥଙ୍କୁ ନିନ୍ଦାକରିବାରୁ ତୁମକୁ ଏଫଳ ଫଳିଲା, ତୁମ୍ଭେ ଶ୍ରୀ ସୋମନାଥଙ୍କୁ ଦର୍ଶନ କରିଯାଅ, ତୁମ୍ଭ ରୋଗ ଭଲ ହେବ । ଏହା ଶୁଣି ରାଜା ଶ୍ରୀ ସୋମନାଥଙ୍କୁ ଦର୍ଶନ କରି ଯିବାକୁ ଉଦ୍ୟୋଗ କଲେ । ପାଟରାଣୀଙ୍କି କହିଲେ, ଆମ୍ଭେ ଶ୍ରୀ ସୋମନାଥଙ୍କୁ ଦର୍ଶନ କରି ଯାଉଅଛୁ, ଆମ୍ଭ ରୋଗ ଭଲହେବ । ଏହାଶୁଣି ରାଣୀ କହିଲେ, ମୁଁ ପତିବ୍ରତା କାହାକୁ ସେବିବ । ରାଜା କହିଲେ ଆମ୍ଭର କଠାଉ ପୂଜା କରି ରହିଥିବ । ଏପରି ରାଜା କହିବାରୁ ରାଣୀ କଠାଉ ପୂଜା କରି ରହିଲେ । ରାଜା ସମସ୍ତଙ୍କୁ ପ୍ରବୋଧନା କରି ବାହାରି ଗଲେ । ଯାଇ ପଶ୍ଚିମ ସୋନାଥଙ୍କୁ

ଭେଟିଲେ । ଶ୍ରୀ ସୋମନାଥଙ୍କୁ ସ୍ତୁତି କଲେ, ସ୍ତବ ପାଠ କଲେ । ସାରବଳମ ପାଟଳ ରାଜାଙ୍କର ଆତୁର ହେବ ନ ପାରି ସେହି କପୋତମାନେ ଶ୍ରୀ ସୋମନାଥଙ୍କୁ କହିଲେ, ହେ ପ୍ରଭୁ ସାରବଳମ ରାଜା ରାଜ୍ୟ ଛାଡ଼ି ତୁମ୍ଭଙ୍କୁ ଦର୍ଶନ କରିବାକୁ ଆସିଅଛି । ଶ୍ରୀ ସୋମନାଥ କହିଲେ, ତାକୁ ଛାଡ଼ି ନଦିଅ, ଦ୍ୱାରେ ରଖ । କପୋତ ମାନେ କହିଲେ, ହେ ରାଜା, ପ୍ରଭୁଙ୍କର ଆଜ୍ଞା ନାହିଁ, ଆଜ୍ଞା ହେଲେ ଆସିବୁ, ଏହି ମଣ୍ଡପରେ ଥାଅ । ତେଣେ ରାଜ୍ୟ ହତଲକ୍ଷ୍ମୀ ହେଲା, ରାଜାର ପୁଅ ଭିକ୍ଷାମାଗି ଆଣିଲେ ରାଣୀ ରନ୍ଧା କରନ୍ତି । ଏରୂପେ କେତେଦିନ ଗଲା । ଏକଦିନେ ରାଜାପୁଅ ଗୋଟିଏ ଗ୍ରାମକୁ ଭିକ୍ଷା ମାଗି ଯାଇଥିଲା । ସେ ଗ୍ରାମର ପାତ୍ର ମନ୍ତ୍ରୀ ପଚାରିଲେ, ତୁମ୍ଭେ ତ ବଳମ ରାଜାଙ୍କର ପୁଅ, ଭିକ୍ଷା କରୁଅଛ ! ଏହା ଶୁଣି ବଳମ ରାଜାଙ୍କର ପୁଅ କହିଲା, ଆମ୍ଭ ରାଜା ସୋମନାଥ ବ୍ରତ ନିନ୍ଦା କରିବାରୁ ହାତଗୋଡ଼ ଖଣ୍ଡିଆ ହେଲା ଓ ହତଲକ୍ଷ୍ମୀ ହେଲେ, ତେଣୁ କରି ଭିକ୍ଷା କରୁଅଛୁ । ଏହା ଶୁଣି ପାତ୍ର ମନ୍ତ୍ରୀମାନେ ସେହି ରାଜ୍ୟକୁ ଯାଇ ରାଣୀକୁ ଘଉଡ଼ ଦେଇ ସେ ରାଜ୍ୟରେ ପାତ୍ର ରାଜା ହେଲା । ରାଣୀ ଦୁଇଗୋଟି ପୋଇଲ ଧରି ବ୍ରାହ୍ମଣ ଶାସନରେ ରହିଲେ । ଏକଦିନକରେ ସୋମନାଥଙ୍କ କପୋତମାନେ ସେହି ବ୍ରାହ୍ମଣ ଶାସନକୁ ଗଲେ । ବ୍ରାହ୍ମଣମାନେ ସୋମନାଥଙ୍କ କପୋତମାନଙ୍କୁ ଦେଖି ପୂଜା କଲେ, କପୋତମାନେ କହିଲେ, ତୁମ୍ଭେ ସୋମନାଥ ବ୍ରତ କର, ଅନେକ ଭୋଗ ପାଇବ, ଧନ ପୁତ୍ର ପାଇବ । ଏହାଶୁଣି ବ୍ରାହ୍ମଣୀମାନେ କହିଲେ, ସେ ବ୍ରତ କପରି କହନ୍ତୁ । କପୋତମାନେ କହିଲେ, ସେ ବ୍ରତର ବିଧାନ ଶୁଣ । ଦଶବର୍ଣ୍ଣର ଫୁଲ କରିବ, ଦଶ ବର୍ଣ୍ଣର ଫଳ କରିବ । ଦଶନାଡ଼ ଦୁବ କରିବ । ଦଶଗୋଟି ଶୁକ୍ଳ ଉଆରୁଉଳ କରିବ । ଦଶଖିଅ ସୁତା କରିବ, ବ୍ରତରେ ଦଶଗଣ୍ଠି ପକାଇବ । ଦଶବର୍ଣ୍ଣର ପୂର ଦେଇ ଦଶଗୋଟି ପିଠା କରିବ । ରୁଦ୍ର

ମଣ୍ଡଳ କାଟିବ,ସୋମନାଥଙ୍କୁ ସ୍ଥାପିବ, ପୁଷ୍ପଚନ୍ଦନଧୂପଦେବ,ଅର୍ଘ୍ୟ ଦେବ, ଦଶବର୍ଣ୍ଣର ପୂରଦେଇ ପିଠାକର ଶ୍ରୀ ସୋମନାଥଙ୍କୁ ପୂଜା କରିବ, ଚନ୍ଦ୍ରଙ୍କୁ ଅର୍ଘ୍ୟଦେବ । ଏହାଶୁଣି ବ୍ରାହ୍ମଣୀମାନେ, ହରଷ ହୋଇ ବ୍ରତକଲେ । ଏମନ୍ତ ସମୟରେ ରାଣୀଙ୍କ ପୋଇଲି ଦେଖି ରାଣୀଙ୍କି କହିଲେ । ରାଣୀ କହିଲେ, ମୁଁ ସୁତା କାଟଇ ତୁ ପାଣି ବହୁ, ଆମ୍ଭେ କ ବ୍ରତ କରିବା । ପୋଇଲି କହିଲା,ବ୍ରାହ୍ମଣୀମାନଙ୍କୁ ବ୍ରତ ମାଗିବା । ପୋଇଲି ଯାଇ ବ୍ରାହ୍ମଣୀଙ୍କି ବ୍ରତ ମାଗିଲା, ବ୍ରାହ୍ମଣୀମାନେ ବ୍ରତଦେଲେ । ରାଣୀ ବିଧିଅନୁସାରେ ବ୍ରତକଲେ । ବ୍ରତ କରିବାରୁ ସୋମନାଥଙ୍କର ଦୟାହେଲା । କେତେଦିନଉତ୍ତାରୁ ରାଜାର ଗୋଡ଼ ହାତ ଭଲ ହେଲା । ରାଜା ସୋମନାଥଙ୍କୁ ଦର୍ଶନ କଲେ । କପୋତମାନେ କହିଲେ,ହେ ରାଜା,ତୁ କଖାରୁଫୁଲରେ ଦେହ କଣ୍ଡୁ କରଇ ବୋଲି କହିଲୁ,ମଣ୍ଡାପିଠାରେ ତାକୁ ଛୁଡ଼ଇ ବୋଲି କହିଲୁ,ସେଥିଯୋଗରୁ ଏ ଦୁଃଖ ପାଇଲୁ । ତୋରଘରପା ବିଧି ଅନୁସାରେ ସୋମନାଥ ବ୍ରତ କରିବାରୁ ସୋମନାଥ ପ୍ରଭୁଙ୍କ ଦୟାହେଲା । ତୁ ରାଜ୍ୟକୁ ଯାଅ । ରାଜା କହିଲେ, ତୁମ୍ଭରବଚନ ନାସ୍ତି କରିବାରୁ ମୁଁ କଷ୍ଟ ପାଇଲି । ଏହାଶୁଣି ରାଜା ରାଜ୍ୟକୁ ଗଲେ, ଦେଖିଲେ ରାଜ୍ୟରେ ରାଣୀ ନାହାନ୍ତି । ଲୋକ ପଠାଇ ବ୍ରାହ୍ମଣ ଶାସନରୁ ରାଣୀଙ୍କୁ ଆଣିଲେ । ରାଣୀ ସକଳ କଥା ରାଜାଙ୍କୁ କହିବାରୁ ରାଜା ଗାତ ଖୋଳି ପାପିର ବଂଶପାକ ପୋତାଇ ଦେଲେ । ରାଜା ରାଣୀ ପୁତ୍ର ପୌତ୍ରୀ ଧରି ସୁଖରେ ରହିଲେ । ନାରୀମାନେ ବିଧି ଅନୁସାରେ ଏ ବ୍ରତ କଲେ ଧନ ଧାନ୍ୟ ପୁତ୍ର ପୌତ୍ରୀ ଧରି ଘର କରନ୍ତି,ଅନ୍ତେ ସଦ୍‌ଗତି ଲଭନ୍ତି ।

(ଆହେ ସୁଜ୍ଞଜନମାନେ ନ ଘେନିବ ଦୋଷ । ଅଧମ ଶାମଳୁ କୃପା କର ସୋମନାଥ ।)

ଇତି ଶ୍ରୀ ସୋମନାଥ ବ୍ରତ କଥା ସମ୍ପୂର୍ଣ୍ଣ

## ତତଃ ଶିବଂ ପୂଜୟେତ୍

ଓଁ ଶିବପଞ୍ଚାକ୍ଷର ମନ୍ତ୍ରସ୍ୟ ବାମଦେବ ଋଷିଃ ପଂକ୍ତିଶ୍ଛନ୍ଦଃ ଶ୍ରୀ ସଦାଶିବୋ ଦେବତା ଓଁ ବୀଜଂ ନଃ ଶକ୍ତିଃ ମଃ କୀଳକଂ ପୂଜା କର୍ମଣିବିନିଯୋଗଃ । ଓଁ ଅଙ୍ଗୁଷ୍ଠାଭ୍ୟାଂ ନମଃ ନଂ ତର୍ଜନୀଭ୍ୟାଂ ସ୍ୱାହା ମଂ ମଧ୍ୟମାଭ୍ୟାଂ ବୌଷଟ୍ ଶଂ ଅନାମିକାଭ୍ୟାଂ ହୁଂ ବାଂ କନିଷ୍ଠାଭ୍ୟାଂ ବୌଷଟ୍ ଯଂ କରତଳ କରପୃଷ୍ଠାଭ୍ୟାଂ ଫଟ୍ । ଏବମଙ୍ଗନ୍ୟାସଃ ।

### ଧ୍ୟାନ

ଧ୍ୟାୟେନ୍ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ
ରତ୍ନାକଲ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗବରାଭୀତିହସ୍ତଂ ପ୍ରସନ୍ନଂ ।
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଘ୍ରକୃତ୍ତିଂ ବସାନଂ
ବିଶ୍ୱାଦ୍ୟଂ ବିଶ୍ୱବନ୍ଦ୍ୟଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରଂ ।
ଓଁ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନଂ
ଉର୍ବାରୁକମିବବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟମାମୃତାତ୍ ।

ଏଷଗନ୍ଧଃ । ଓଁ ଶିବାୟ ନମଃ ଏତତ୍ ପୁଷ୍ପଂ ଓଁ ଶିବାୟ ବୌଷଟ୍ ଏଷ ଧୂପଃ ଓଁ ଶିବାୟ ସ୍ୱାହା ଏଷ ଦୀପଃ ଓଁ ଶିବାୟ ସ୍ୱାହା ଏଷ ନୈବେଦ୍ୟଂ ଓଁ ଶିବାୟ ସ୍ୱାହା ଏତଦାଚମନୀୟଂ ଓଁ ଶିବାୟ ସ୍ୱଧା ଏତତ୍ତାମ୍ବୁଲଂ ପୁନରାଚମନୀୟଂ ଓଁ ମହାଦେବାୟ ବିଦ୍ମହେ ବିଶ୍ୱରୂପାୟ ଧ ମହି । ତନ୍ନଃ ଶିବ ପ୍ରଚୋଦୟାତ୍ ।

ପ୍ରାର୍ଥନା । ଓଁ ନମଃ ଶିବାୟ ଶାନ୍ତାୟ କାରଣତ୍ରୟହେତବେ ନିବେଦୟାମି ଚାତ୍ମାନଂ ତ୍ୱଂ ଗତିଃ ପରମେଶ୍ୱର ଓଁ ଶିବାୟ ନମଃ । ପିଣ୍ଡୀନଚଣ୍ଡାୟ ନମଃ । ଲିଙ୍ଗମୁଦ୍ରାଂ ଦର୍ଶୟେତ୍ ।

### ସଂକ୍ଷିପ୍ତ ଶିବ ପୂଜା ସମାପ୍ତ

---

ବ୍ରହ୍ମପୁର ସନ୍ନ୍ୟାସୀ ପ୍ରେସ୍‌ରେ ଶ୍ରୀ ତ୍ରନାଥ ସାହୁଙ୍କଦ୍ୱାରା ମୁଦ୍ରିତ